# ସଛସଘ

## ନାଟକ



ବ୍ରଜବାସୀ
ବାବାଜି ଶ୍ରୀ ବୈଷ୍ଣବଚରଣ ଦାସ

ବ୍ରଜବାସୀ

ଗୋସ୍ୱାମୀ ଶ୍ରୀ ବୈଷ୍ଣବଚରଣ ଦାସଙ୍କ ବିରଚିତ

# ରାଈ-ରାଜା ନାଟକ ।



ଶ୍ରୀ ଦାଶରଥି ଦାସଙ୍କଦ୍ୱାରା ପ୍ରକାଶିତ ।

ଦ୍ୱିତୀୟ ସଂସ୍କରଣ ।

Printed by R. N. Rath,
at the Satyabadi Press,
CUTTACK,
1929.

ମୂଲ୍ୟ ୦ ୦ ୵ ଦୁଇଅଣା ମାତ୍ର ।

# ରାଈରାଜା ନାଟକର

## ଲୀଳା ବିନୋଦକାରୀମାନଙ୍କ ପରିଚୟ ।

---

ଶ୍ରୀକୃଷ୍ଣ—ନନ୍ଦନନ୍ଦନ ବା ବ୍ରଜଯୁବରାଜ ।

ଶ୍ରୀରାଧା—ବୃଷଭାନୁ ରାଜାଙ୍କ କନ୍ୟା ।

ଚନ୍ଦ୍ରାବଳୀ—ଚନ୍ଦ୍ରଭାନୁଙ୍କ କନ୍ୟା ।

ବୃନ୍ଦା—ଶ୍ରୀରାଧାଙ୍କ ଦୂତିକା ।

ଲଳିତା—ଶ୍ରୀରାଧାଙ୍କ ପ୍ରଧାନ ସଖୀ ।

ବିଶାଖା—ଶ୍ରୀରାଧାଙ୍କ ପ୍ରିୟନର୍ମ୍ମ ସଖୀ ।

ଚମ୍ପକଲତା—ଶ୍ରୀରାଧାଙ୍କ ପ୍ରିୟ ସଖୀ ।

ଚିତ୍ରା— „ „

ତୁଙ୍ଗବିଦ୍ୟା— „ „

ଇନ୍ଦୁରେଖା— „ „

ସୁଦେବୀ— „ „

ରଙ୍ଗଦେବୀ— „ „

ଶୈବ୍ୟା—ଚନ୍ଦ୍ରାବଳୀଙ୍କ ପ୍ରିୟସଖୀ ।

ପଦ୍ମା—ଚନ୍ଦ୍ରାବଳୀଙ୍କ ଅନ୍ତରଙ୍ଗ ସଖୀ ॥

ପ୍ରକାଶ ଥାଉକି ଯୋଗପୀଠରେ ଏମାନଙ୍କର ବର୍ଣ୍ଣ, ବସ୍ତ୍ର, ବୟସ, ସେବା, ଇତ୍ୟାଦି ବର୍ଣ୍ଣିତ ଅଛି ।

( ନଃ )

ବ୍ରଜବାସୀ

# ଭୂମିକା ।



କୃଷ୍ଣ ଯେ ସ୍ୱୟଂ ପରଂବ୍ରହ୍ମଙ୍କ ପୂର୍ଣ୍ଣ ଅବତାର ଏବଂ ଶ୍ରୀରାଧା ଯେ ଆଦ୍ୟା ମୂଳ ପ୍ରକୃତି, ଏ ରାଇରାଜା ନାଟକରେ ତାହାହିଁ ବିଶଦରୂପେ ପ୍ରଦର୍ଶିତ ହେବ । ଅଧିକନ୍ତୁ ଆଦ୍ୟାଶକ୍ତି ଯେ ତ୍ରିଲୋକୀ ତଳେ ପ୍ରଧାନା; ସେହି ଶକ୍ତି ବିନା ଯେ କି ପରମପୁରୁଷ ଭଗବାନ ସେ ମଧ୍ୟ କୌଣସି କାର୍ଯ୍ୟରେ ସମର୍ଥ ନୁହନ୍ତି । ତାହାହିଁ ସମସ୍ତ ଭକ୍ତବୃନ୍ଦରେ ଦେଖାଇବା ନିମିତ୍ତ ଶ୍ରୀମତୀ ରାଧିକାଙ୍କୁ ବୃନ୍ଦାବନରେ ରାଜା କରି ସ୍ୱୟଂ ତଦୀୟ ଚରଣତଳରେ ଦାସରୂପେ କୋଟୁଆଳ ବେଶ ଧାରଣ କରି ଉପସ୍ଥିତ ହୋଇଥିଲେ; ଏହି ଗୀତାଭିନୟ ନାଟକ ଖଣ୍ଡିକ ପାଠକଲେ ଅଥବା ରଙ୍ଗମଞ୍ଚରେ ଦର୍ଶନ କଲେ ଭାବୁକ ରସିକ ଭକ୍ତମାନେହିଁ ତାହା ସମ୍ୟକ୍ ହୃଦୟଙ୍ଗମ କରିପାରିବେ ଏବଂ ସର୍ବସାଧାରଣରେ ମଧ୍ୟ ଅତି ସହଜେ ବୁଝି ପାରିବେ । ଏଥିପାଇଁ ଏହି ନାଟକର ଭାଷା ଓ ଗୀତ-ଗୁଡ଼ିକ ଯେତେଦୂର ସରଳ ଓ ପ୍ରାଞ୍ଜଳ ହେବା ସମ୍ଭବ, ତାହା କରିବାକୁ ଯଥାସାଧ୍ୟ ଯତ୍ନର ତ୍ରୁଟି ହୋଇ ନାହିଁ । ଏହାର ମର୍ଯ୍ୟାଦା ଯେଉଁ ସଜ୍ଜନମାନେ ଜାଣନ୍ତି ତାଙ୍କର ହସ୍ତରେ ଏ ପୁସ୍ତକ ଶରଦନ ରହୁ କମଣ୍ଡକ ମିତ ।

ଶ୍ରୀ ଶ୍ରୀରାଧାଗୋବିନ୍ଦ ରାସଲୀଳା ସମିତି
ପୋ: ସାକ୍ଷୀଗୋପାଳ, ପୁରୀ
ତା ୧୦।୩।୫୪

ଭକ୍ତ କୃପାଭିକ୍ଷୁ
ଶ୍ରୀ ବୈଷ୍ଣବଚରଣ ଦାସ ବାବାଜୀ
ସମ୍ପାଦକ

ପାଶାଖେଳ
ଓ
# ରାଈରାଜା ନାଟକ ।

## ପ୍ରଥମ ଅଙ୍କ

( ପ୍ରଥମ—ଦୃଶ୍ୟ )

ନିଭୃତ ନିକୁଞ୍ଜ ।

( ରହବେଶରେ ଶ୍ରୀକୃଷ୍ଣ, ଶ୍ରୀରାଧା, ଚନ୍ଦ୍ରାବଳୀ ଓ ଅନ୍ୟାନ୍ୟ ସଖିଗଣ ଆସୀନା )

ଶ୍ରୀକୃଷ୍ଣ—( ଶ୍ରୀରାଧାଙ୍କ ପ୍ରତି ) ପ୍ରିୟେ ! ଆଜି ତୁମ ସହିତ ପାଶା ଖେଳିବାକୁ ମୋର ଶ୍ରଦ୍ଧା ହେଉଛି, ଆସ ପାଶା ଖେଳିବା ।

ଶ୍ରୀରାଧା—ପ୍ରାଣେଶ୍ୱର ! ଆପଣଙ୍କର ଯେ ଇଚ୍ଛା ।

ଲଳିତା—ନାଗର ! ଆମ ରାଧାଙ୍କ ସଙ୍ଗେ କଣ ତେମେ ଖେଳିପାରିବ ?

ଶ୍ରୀକୃଷ୍ଣ—ପଣାପାଲି ଆଣ, ହାରଜିଣ ଜଣାପଡ଼ିବ ।

ଶ୍ରୀରାଧା—( ହସିକରି ) ଲଳିତେ ! ପଣାପାଲି ଆଣ ।

ଲଳିତା—ନାଗର ! ଯେବେ ଆମ ରାଧା ହାରିବେ, ତେବେ ତାଙ୍କ ଇନ୍ଦ୍ରନୀଳମଣି ହାରଟି ବାଜି ରହିଲା । ଆଉ ଯଦି ତେମେ ହାରିବ—କଅଣ ବାଜି ରଖିବ ?

ଶ୍ରୀକୃଷ୍ଣ—( ହସି ) ମୋର ଏହି ମୋତିହାରଟି ବାଜି ରହିଲା ।

ବିଶାଖା—ନାଗର ! ନା ନା, ତେମେ ଏ ଯେଉଁ ବୁଲଉଛ, ମୁରଲୀଟିର ସାହାଯ୍ୟରେ ଏତେ ନଟକୁଟ କରୁଚ, ସେହି ମୁରଲୀଟି ବାଜି ରଖ ତେବେ ରାଧା ଖେଳିବେ ।

ଲଳିତା—ସଖି ! ସତ କହିଲ, ସେହି ମୁରଲୀ ହିଁ ରଖନ୍ତୁ ।

ଶ୍ରୀରାଧା—( ମୃଦୁ ମୃଦୁ ହସି ମୁଖ ତଳକୁ ରଖି ଲଜ୍ଜା କରିବା )

ଶ୍ରୀକୃଷ୍ଣ—ଲଳିତେ ! ଏହା କିପରି କହୁଛ ? ଏ ମୁରଲୀର ଗୁଣ କଣ ତୁମେମାନେ ଜାଣିନାହଁ ? ଆଉ ତୁମେମାନେ ଏହାକୁ ଲୁଚେଇ ରଖି ପାରିବ ନାହିଁ ।

ଲଳିତା—କାହିଁକି ?

ଶ୍ରୀକୃଷ୍ଣ—ଏହାକୁ ତୁମେ ଯେଉଁଠାରେ ଲୁଚାଇବ ସେଠାରେ ବିନା ଫୁଙ୍କରେ ବାଜିଉଠିବ, ତେବେ କଣ ତୁମେମାନେ ଆଉ ଲାଜରେ ବାଟ ଚାଲିପାରିବ ?

ଲଳିତା—ଆମେ ବାନ୍ଧିକରି ରଖିଲେ ଏ କଅଣ କରିବ ?

ଶ୍ରୀକୃଷ୍ଣ—ଏହାର ଏପରି ଅଦ୍ଭୁତ ଶକ୍ତି ଅଛି ଯେ, ସହଜରେ ବନ୍ଧନ-ଡୋରି ଛଡ଼ାଇ ଦେଇପାରେ ।

ବିଶାଖା—ତେବେ ତେମେ କଅଣ ହିଁ ରଖିବ ?

ଶ୍ରୀକୃଷ୍ଣ—ମୁଁ ମନେକରୁଛି ଯଦି ତମ ରାଧା ହାରିବେ ତେବେ ମୁଁ ହାସ୍ୟ ରହସ୍ୟରେ ଦଶବାର ଚୁମ୍ବନ ଦେବି । ଆଉ ଯଦି ମୁଁ ହାରିବି ତେବେ ରାଧା ଦଶବାର ଚୁମ୍ବନ ଦେବେ । ହାର ହିଁରେ କିଛି ପ୍ରୟୋଜନ ନାହିଁ ।

ଲଳିତା—ନାଗର ! ଅମ ଠାକୁରାଣୀଙ୍କ ତା ଅପେ ନାହିଁ । ଅଳଙ୍କାର ହିଁ ରଖ ।

ଶ୍ରୀକୃଷ୍ଣ—ତେବେ ତାଙ୍କର କେଉଁ ଅଳଙ୍କାର ପ୍ରଥମ ହିଁ ?

ଲଳିତା—ତାଙ୍କର କଣ୍ଠନୀଳମଣି ନାସିକା ବେଶର ହିଁ ରହିବ, ଯଦି ଖେଳରେ ଜିତିବେ, ତେବେ ତମ ଗୁଞ୍ଜହାରକୁ ଅମେମାନେ ବଳପୂର୍ବକ ବାହାର କରିନେବୁ ।

ବିଶାଖା—ସଖି ଲଳିତେ ! ତା ନୁହେଁମ୍, ନାଗର ଯଦି ହାରିବେ ତେବେ ତାଙ୍କ ମୟୂରଚନ୍ଦ୍ରିକା ଚୂଳଟିକି ଅମେମାନେ

କାଢିନେବା, ଯେବେ ଜିଣିବେ ତେବେ ରାଧାଙ୍କର ଏଠ
ମାଳ ଆଣି ନେବେ । ଯଦି ଖେଳରେ ସମାନ ହୁଏ ତେବେ
ଧନୀ ଅମର ପ୍ରେମାଲିଙ୍ଗନ ସହିତ ଦଣବାର ଚୁମ୍ବନ
ଦେବେ ।

ଲଳିତା—ଆଉ ମଧ୍ୟ ଦ୍ୱିତୀୟ ବାର ହାରିଲେ, ନାଗରଙ୍କ ନୂପୁର କଙ୍କଣ
ଛଡ଼ାଇ ରଖିବା, ଅମ ରାଧା ବୈଜୟନ୍ତୀ ମାଳାଟି ଦେବେ ।

( ଏହା କହି ପଶାପାଲି ପକାଇବା ଅଭିନୟ )

ବିଶାଖା—ନାଗର ! ତମର କେଉଁ ସାର ନେବାକୁ ଇଚ୍ଛା, କଅ ।

ଶ୍ରୀକୃଷ୍ଣ—ତମ ରାଧା ଅଗ ସାର ବାଛି ନିଅନ୍ତୁ ।

ଚମ୍ପାଲତା—ସଖି ରାଧେ ! ତମର କେଉଁ ସାର ପ୍ରତି ଇଷ୍ଟ ହେଉଛି,
ବାଛି ନେନ ।

ଶ୍ରୀରାଧା—( ସଲଜ୍ଜେ, ନୀଳ, ନାଲି ସାର ବାଛି ନେବା ଅଭିନୟ । )

ଶ୍ରୀକୃଷ୍ଣ—( ହଳଦୀ କାଳିସାର ନେବା ଅଭିନୟ । )

( ପ୍ରଥମେ ଶ୍ରୀକୃଷ୍ଣ )

ଶ୍ରୀକୃଷ୍ଣ—ପଶାକାଠି ଧରି ଦାନ ଡାକିବା ଅଭିନୟ ।
( ବାର, ବାର, ବାର, ଦଶଦାନ ପଡ଼ିବା )

ଶ୍ରୀରାଧା—ପଶାକାଠି ଧରି ଦାନ ଡ଼ାକିବା ଅଭିନୟ, ।
( ଦଶ, ଦଶ, ଦଶ, ଦଶଦାନ ପଡ଼ିବା )

ଲଳିତା—( ତାଳମାରି ହସି ) ନାଗର ! ତେମେ ହାରିଲ, ଅମ
ରାଧାଙ୍କର ଜୟ ହେଲା ।

ସଖିଗଣ—( ତାଳମାରି ହସି ହସି ) ଜୟ ରାଧେ (ତିନିଥର କହିବା)

ଲଳିତା—ସଖିଏ ଲୋ ! ନାଗରଙ୍କ ଗଳାରୁ ଗୁଞ୍ଜହାର ଆଉ ଶ୍ରୀହସ୍ତରୁ
କଙ୍କଣ ଛଡ଼ାଇ ଅଣିଦିଅ !

ସଖିଗଣ—( କଙ୍କଣ ଛଡ଼ାଇ ଅଣିବା ଅଭିନୟ )

ଶ୍ରୀକୃଷ୍ଣ—( ଲଜ୍ଜା ସହିତ ) ଦେଖ ଏହିଥର ମୋର ଜିଣା ହେବ ।

( ଏହା କହି ଡ଼ାକିବା ) ପଞ୍ଚ ତଉବଣ୍ଟ ।

( କାଠି—ଦୁଗା, ଦାନ ପଡ଼ିବା )

ସଖିଗଣ—( ତାଳମାରି ) ଜୟ ଗୋପ (୩ବାର ଉଚ୍ଚସ୍ୱରରେ କହିବା)

ଲଳିତା—ନାଗର ! ଅଜ ଶୃଙ୍ଖଳ କରନାହିଁ ।
ଏଥର ମୁରଲୀଟି ଦେବାକୁ ହେବ ।

ରାଧା—ଲଳିତେ ! ଦେବାକୁ ହେବବୋଲି କଣ କହୁଛ, ତାଙ୍କ
ସେଥିରେ ଆଉ ଅଧିକାର ନାହିଁ ଶୀଘ୍ର ଛଡ଼େଇ ଆଣ ।

ଲଳିତା—ନାଗର ! ଛାଡ଼ ମୁରଲୀ ଛାଡ଼, ( ଏହା କହି ବଂଶୀ ଛଡ଼ାଇ
ନେବା )

ଶ୍ରୀକୃଷ୍ଣ—ଲଳିତେ ! ଦେଖ ଏଇବାର ମୁଁ ଜିଣିଲେ ତମ ସଖୀଙ୍କ
ସମସ୍ତ ଅଳଙ୍କାର ନେବି ।

ଲଳିତା—ହଁ, ହଁ ଜିଣିବା ତମ ମୁଖରୁ ଜଣାଯାଉଛି । ହଉ ଖେଳ ।

ଶ୍ରୀକୃଷ୍ଣ—(ଦାନଭାଙ୍ଗ କାଠି ଗଡ଼ାଇବା ଅଭିନୟ )
ଶେଷରେ ହାରିବା ପରି ।

ସଖିଗଣ—( ତାଳମାରି ହସି ହସି ) ଲମ୍ପଟ ନାଗର !
ଆଉ ପଣ କଲେ କଣ ହେବ, ଶୀଘ୍ର ମୟୂରଚନ୍ଦ୍ରିକା ଆଉ
ପୀତଧଡ଼ା ଦିଅ ।

( ଏହା କହି ଛଡ଼ାଇ ନେବା ଅଭିନୟ )

ଶ୍ରୀକୃଷ୍ଣ—ସଖି ଲଳିତେ ! ମୁଁ ପ୍ରାର୍ଥନା କରୁଛି, ଏଇବାର ଖେଳରେ
ଯଦି ମୁଁ ହାରେ ତେବେ ତମମାନଙ୍କର ଯେ ଇଚ୍ଛା ତାହା
କରିପାର, ଯଦି ଜିଣେ ମୋ ମୁରଲୀଟି ମୋତେ ଦେବ,
ସେ ମୋର ଜୀବକା ।

ବିଶାଖା—ମୋହନ ! ଏହି ମୁରଲୀ ଲାଗି ଆମେମାନେ କେତେ
ଅବସ୍ଥା ହେଉଛୁଁ ; ଆଉ କେବେହେଁ ମୁରଲୀ ଦେବୁଁ ନାହିଁ ।

ଲଳିତା—ବିଶାଖେ ! ଯା କହନ୍ତୁ, ଆଗ ଖେଳ ହେଉ, ପଛେ ସବୁ
ଜଣାଯିବ ( ଏହା କହି ପାଶି ପ୍ରସାରିବା )

ଶ୍ରୀକୃଷ୍ଣ—[ ରଙ୍ଗ ହଳଦୀସାର ବାଣ୍ଟିନେବା ଅଭିନୟ, ]
ଶ୍ରୀରାଧା—( କାଳୀ ପଚସାର ନେବା ଅଭିନୟ, ଦୁଇପାର୍ଶ୍ୱରେ ବୃନ୍ଦା
ଚନ୍ଦ୍ରାବଳୀ ସାର ଗୁଳିବା ଅଭିନୟ ।
ଶ୍ରୀକୃଷ୍ଣ—( ଦାନ ଡାକିବା ଅଭିନୟ ) ପଡ଼ ଅଠର ।
ଶ୍ରୀରାଧା— „ ପଡ଼ ଅଠର ।
ଶ୍ରୀକୃଷ୍ଣ— ( ଦାନ ଡାକିବା ଅଭିନୟ ) ପଡ଼ ପନ୍ଦର ।
ଶ୍ରୀରାଧା—( ମଉନ ହୋଇରହିବା ଅଭିନୟ )
ଲଳିତା—ରାଧେ ! ମଉନ ହୋଇ ରହିଯାଉଚ କାହିଁକି ?
ଶ୍ରୀରାଧା—ସଖି ! କଅଣ କରିବି ?
ଲଳିତା—କୃଷ୍ଣ ଘୁମର କାଠି ପକାଅ ମ ।
ଶ୍ରୀରାଧା—( କୃଷ୍ଣ କୃଷ୍ଣ ଘୁମର କାଠି ଗଡ଼ାଇବା )
( କାଠି ପନ୍ଦର ପଡ଼ିବା ସମୟେ ରାଧା ପକ୍ଷ ସଖିଗଣ ହସି ହସି
କୃଷ୍ଣଙ୍କଠାରୁ ସମସ୍ତ ଅଳଙ୍କାର ଛାଡ଼ାଇ କରି ନେବା ଅଭିନୟ )
ଲଳିତା—ସଖି ଚନ୍ଦ୍ରାବଳି ! ତେମେ ଆଜ ବଂଶୀ ଦିଅ ନା ।
ବିଶାଖା— ଲଳିତେ ! ତେମେ ମକରକୁଣ୍ଡଳ ଛଡ଼ାଇବଟି ?
ଚନ୍ଦ୍ରାବଳୀ-ବିଶାଖେ ! ତେମେ ଅଙ୍ଗୁଳିରୁ ମୁଦ୍ରିକାଯାକ ବାହାର କରି
ନେବଟି ?
ଶ୍ରୀରାଧା—( ମନେ ମନେ ହସି ହସି ) ସଖିଏ ଲୋ ! ପ୍ରାଣନାଥଙ୍କୁ
ଆଉ ହଟହଟା କରନା, ତାଙ୍କୁ ଛାଡ଼ିଦିଅ ।
ଲଳିତା—ରାଧେ ! କପରି ଛାଡ଼ିବା ବୋଲି କହୁଚ, ଇଏ ଆଗ "ରାଧା
ଜୟ" ବୋଲି କହନ୍ତୁ ।
ବିଶାଖା—ନାଗର ! ତେମେ (ରାଧା ଜୟ) ବୋଲି ନ କହିବା ପର୍ଯ୍ୟନ୍ତ
କଣ ଆମେମାନେ ତମକୁ ଛାଡୁଚୁ ?
ଶ୍ରୀକୃଷ୍ଣ—ହଉ ତେବେ କହୁଛି,

ଗୀତ ।

ଜୟ ଜୟ ଜୟ ରାଧେ ! ବୃନ୍ଦାବନେଶ୍ୱରୀ ।
ଜୟ ଜୟ ଜୟ ରାଧେ ! ନବୀନକିଶୋରୀ ଗୋ ॥
ଜୟ ଜୟ ଜୟ ରାଧେ ! ପରମେଶ୍ୱରୀ ।
ଜୟ ଜୟ ଜୟ ରାଧେ ! ଭାନୁରାଜକୁମାରୀ ଗୋ ॥

( ବ୍ରଜବାସୀ )

ସଖିଗଣ—( ହସି ୨ ) ମୋହନ ! ଏଥର ତମ ଠାଣ କୁଆଡେ ଗଲା

ଗୀତ ।

କାଳନ୍ଦୀକୂଳକୁ ମୋ ସଙ୍ଗାଳ—ବୁଲେ ।
ହେ ମୋହନ ତୁମ୍ଭ ଠାଣ ଗଲାଣି କେଣିକି ହେ । ଘୋଷା ।
କେତେ କରୁଥିଲ ଆସ୍ଥା, କାହିଁ ଗଲା ସେ ମୁରୁକ୍ଷ
ଆପଣା ମନରେ ବାନ୍ଧ, ପାରବ ଜାଣିକି ହେ । ୧ ।
ଆହେ ପ୍ରଭୁ ଉବଗ୍ରାହ, କେତେ କରୁଥିଲ ଠାହ ।
କେତେ ଦଣ୍ଡାଇଛ ପର, ଅବଳା ଜାଣିକି (ଆମ୍ଭ କିଶୋରୀ ମଣିକି) ।

( ୰ ଶ୍ରୀଚନ୍ଦନ )

ଶ୍ରୀକୃଷ୍ଣ—( ବିନୟ ଦୂର୍ବକ ) ସଖି ! ଏଇଥର କ୍ଷମାକର । ପୁଣିଥରେ ଖେଳିବା ।

ଲଳିତା—ନାଗର ! ଉବବାରରୁ ଧର୍ମଗଲା, ଆଉ କପଟ ଖେଳିବାକୁ ସାହସ କରୁଛ ? ତା ହେବ ନାହିଁ ।

ଶ୍ରୀକୃଷ୍ଣ—ଲଳିତେ ! ଏଥର ଯଦି ମୁଁ ହାରିବ, ତେବେ ନିଜେ ବନ୍ଧା ରହିବ, ଆଉ ମଧ ରାଧା ଏ ବନରେ ରାଜା ହେବେ ।

ଲଳିତା—ତେବେ ମଁ କହୁଥିଲ ହେବ ତ ?

ଶ୍ରୀକୃଷ୍ଣ—ହଁ, ମୁଁ କହୁଅଛ ହେବ ।

ଚନ୍ଦ୍ରାବଳୀ-ତେବେ ଖେଳିବସ, ( ଲଳିତା ପ୍ରତି ) ସଖି ଲଳିତେ ! ସ୍ୱାଙ୍କର କଥା କରବା

ଲଳିତା—ନାଗର ! ଯଦି ଆମ ରାଧା ରାଜା ହେବେ, ତେମେ କନ୍ଦୁଅଳ ହେବବୋଲି ତିନିବାର ସତ୍ୟକର ତେବେ ଆମେମାନେ ମତ ଦେବୁଁ ।

ଶ୍ରୀକୃଷ୍ଣ—ହଁ, ସତ୍ୟ କରୁଚି ।

ଗୀତ ।

ସତ୍ୟ ସତ୍ୟ ସତ୍ୟ ମୋର ତିନିବାର ସତ୍ୟ ।
ହାରିଲେ ମୁଁ ଏହିବାର ହେବ ତାଙ୍କ ଭୃତ୍ୟ ସଖି ଲଳିତେ ଗୋ ।୧।
ବୃନ୍ଦାବନେ ରାଜା ହେବେ ରାଈ ବିଧୁବଦନୀ ।
କନ୍ଦୁଅଳ ହେବ ମୁହିଁ ତାଙ୍କ ଅଜ୍ଞା ମାନି ସଖି ଲଳିତେ ଗୋ । ୧ ।
ଯଦି ଖେଳରେ ହାରିବେ କୃଷ୍ଣପ୍ରିୟା ରାଧିକା ।
ତେବେ ବୃନ୍ଦାବନେ ମୁହିଁ ରାଜା ହେବି ଏକା ସଖି ଲଳିତେ ଗୋ ।୩।

ଶ୍ରୀରାଧା—ସଖି ଲଳିତେ ! ନାଗର ଭଲକଥା କହିଛନ୍ତି । ଏବେ ଯାଙ୍କ କଥା ରଖି ପୁଣି ଥରେ ଖେଳ ଆରମ୍ଭ କରିବା ।

ଲଳିତା—ମୋହନ ! ତେବେ ଖେଳିବସ ।

( ଏହାକହି ଖେଳ ଖେଳିବା ଓ ଶେଷରେ ଶ୍ରୀକୃଷ୍ଣ ହାରିବା ଦେଖି ସଖିଗଣ କରତାଳି ମାରି ଜୟ ରାଧେ ରାଧେ ବୋଲି ହୁଳହୁଳି ଦେବା ଅଭିନୟ । )

ଚନ୍ଦ୍ରାବଳୀ-ନାଗର ମୋହନ ! ତେମେ ପ୍ରଥମେ ବଂଶୀ ହାରିଲ, ଦ୍ୱିତୀୟରେ ଅଭରଣ ହାରିଲ, ଅଉମଧ ତୃତୀୟରେ ଅଙ୍ଗ ଶ୍ରୀଅଙ୍ଗକୁ ହାରିଲ, ଏବେ କି ବିଚାର ?

ଶ୍ରୀକୃଷ୍ଣ—ତମମାନଙ୍କର ଯେ ଇଚ୍ଛା ।

ଚନ୍ଦ୍ରାବଳୀ—ଏ ଥର ଆମରାଧା ରାଜା ହେବେଟି ?

ଶ୍ରୀକୃଷ୍ଣ—( ଲଜ୍ଜାରେ ମୁଖତଳକୁ ରଖିବାଅଭିନୟ )

ଲଳିତା—ରାଧେ ! ଏ ନାଗର ତମର କିଣିବା ଧନ ହେଉଛନ୍ତି, ଯାଙ୍କୁ ଯତ୍ନକରି ପ୍ରେମପାଶରେ ବାନ୍ଧିରଖି ତମ ଇଚ୍ଛା ଯାହା ତାହା କର ।

ଶ୍ରୀରାଧା—(ଶ୍ରୀକୃଷ୍ଣଙ୍କୁ ଶୋଭାହୀନ ଦେଖି ଦୁଃଖରେ) ସଖି ଲଳିତେ ! ତେମେମାନେ କେଡେ ନିଦାରୁଣ ? ଆହା, ପ୍ରାଣବନ୍ଧୁ ମୋର କି ନାରଖାର ଦିଶୁଛନ୍ତି । ଶ୍ରୀମୁଖଟି ମଳିନ ପଡ଼ି ଗଲାଣି, ଅଳଙ୍କାରତକ ପିନ୍ଧେଇଦିଅ ।

ସଖିଗଣ—ରାଧେ ! ଦୁଃଖ କରୁଛ କାହିଁକିମ ! ଆମେମାନେ ପିନ୍ଧେଇ ଦଉଛୁ ଗୋ ।

(ଏହା କହି ଶ୍ରୀକୃଷ୍ଣଙ୍କୁ ଅଳଙ୍କାର ପିନ୍ଧେଇ ଦେବା ଅଭିନୟ)

ଶ୍ରୀକୃଷ୍ଣ—ପ୍ରିୟେ ! ଏ ଅଳଙ୍କାରରେ ମୋର ପ୍ରୟୋଜନ ନାହିଁ, ମୋତେ ବଂଶୀଟି ଦେଲେ ବାହୁଡ଼ଉପକାର କରିବ ।

ଗୀତ ।

ଅରେ ପ୍ରାଣଧନ ।

ବଂଶୀ ଦେଇ ରଖ ନିଜ ଦାସ ପ୍ରାଣ । ଘୋଷା ।

ତୋହର କିଣିବା ଦ୍ରବ୍ୟ ସେହି, ମୋ କ୍ଷମତା ତହିଁ କିଛି ନାହିଁ ।

ତରେ ଦୟାକରି ବଂଶୀ ଦିଅ ଗୋରି ନୋହିଲେ ହେଲିଟି ମୁଁ ଉଚ୍ଛନ୍ନ,

ଅରେ ପ୍ରାଣଧନ । ୧ ।

ମୁହିଁ ଯେବେ ତୋର କିଣାଜନ, ବାଂଶୀ ରଖି କି ପ୍ରୟୋଜନ ।

ଆୟୁଧ ସେ ମୋର ଶତ୍ରୁରେ ବଧିବି ତୁ କି ନଜାଣୁ ସ୍ୱମାରଧନ । ୨ ।

ଅଗୋ କୃପାମୟି କୃପାକର, ତୋ ବିନା ମୋର କେ ଅଛି ଆର ।

ଦାସ ଜନ ହେବ ସେବା ନିଯୋଗିବ ଏହି ବାଞ୍ଛାକରେ ମୋରମନ ।୩।

( ୰ ଶ୍ରୀଚନ୍ଦନ )

( ଏହାକହି ଶ୍ରୀମତୀଙ୍କ ଛାମୁରେ ଭୃତ୍ୟ ପ୍ରାୟ ରହିବା ଅଭିନୟ )

ସଖିଗଣ— ଗୀତ ।

ଶ୍ୟାମଘନ ହେ !

ଏ ବଂଶୀ ନ ଦେବୁ କଦାଚନ । ଘୋଷା ।

ଏହି ବଂଶୀଲାଗି ହରି ହେଲୁ ଅମ୍ଭେ ଏତେସରି,

କୂଳ ଛଡ଼ାଇ ଆମ୍ଭର ବୁଲାଇଲୁ ବନ ହେ, ଶ୍ୟାମଘନ ହେ । ୧ ।

ଲୋକଧର୍ମ ବେଦଧର୍ମ, ଛଡ଼ାଇ ଆମ୍ଭ ପ୍ରାକର୍ମ,
ଭଗାର ହୋଇ ଏବେ ଏ କରଛୁ ଉଚ୍ଛନ୍ନ ହେ । ୨ ।
ଯମୁନା ନଦୀରେ ନେଇ, ଏକ୍ଷଣି ଦେବୁ ଭସାଇ,
ତେବେ ମନେ ସୁସ୍ଥ ହୋଇ ରହିବୁ ଟି ଜାଣ ହେ । ୩ ।
( ୪ ଶ୍ରୀନନ୍ଦନ )

ଶ୍ରୀକୃଷ୍ଣ—ସଖି ସେ ମୁରଲୀଟି ମୋର ପ୍ରାଣ,

ଚନ୍ଦ୍ରାବଳୀ—ନାଗର ! ଆମେ କେବେହେଁ ଦେବୁନାହିଁ
ବଂଶୀ ଛଡା ଅଉ ଯାହା ମାଗିବ ତାହା ଦେଇପାରୁଁ ।
ଏ ବଂଶୀକୁ ନଷ୍ଟେ ଯମୁନାରେ ଭସାଇଦେବୁଁ ।

ଲଳିତା –ସଖି ଚନ୍ଦ୍ରାବଳ ! ଭସେଇ ଦେବା କାହିଁକି ? ଥାଉ ଅମ ରାଧା ବଜେଇବେ । ଦେଖିବା ଦେଖି, ନାଗର ମୋହନ କପରି ମୋହିତ ନ ହେବେ ।

ଚନ୍ଦ୍ରାବଳୀ-ସଖି ସତ କହିଲ, ପରୀକ୍ଷା କରିବା । ( ରାଧାଙ୍କ ପ୍ରତି ) ସଖି ରାଧେ ! ଆମର ଦେଖି ବଜେଇବଟି ?

ଶ୍ରୀରାଧା—( ହସି ହସି ଚନ୍ଦ୍ରାବଳୀଙ୍କ ହାତରୁ ବଂଶୀ ନେଇ ମୁଖରେ ଲଗେଇ ଫୁଙ୍କିବା ଅଭିନୟ । )

ବଂଶୀ—( ଶବ୍ଦ ଶୂନ୍ୟ ହେବା )

ଶ୍ରୀରାଧା—ସଖି ! ବାଜୁନ ନାହିଁ ?

ଲଳିତା—ସଖି ରାଧେ ! ମୋହନ ତମରି ନାମରେ ଜଗତକୁ ମୋହୁ ଥାନ୍ତି ନିଜ ନାମ ଧରି ବଜାଅ ।

ଶ୍ରୀରାଧା—( ନିଜନାମ ଧରି ଫୁଙ୍କିବା ଓ ବଂଶୀ ବାଜି ଉଠିବା )

ଲଳିତା—ରାଧେ ! ଦେଖିଲ ? କପରି ମଧୁର ୨ ବାଜୁଛି,

ସଖିଗଣ—ରାଧେ । ତେମେ ବଜାଅ ଅମେମାନେ ଗୀତ ଗାଉଚୁ ।

ଶ୍ରୀରାଧା—ହଉତେବେ ଗାଅ ( ଏହା କହି ବଂଶୀ ବଜାଇବା )

ସଖିଗଣ— ଗୀତ ।

ଶୁଣି ଏ ବଂଶୀର ନାଦ, ସବେ ହେଲେଣି ଉନ୍ମାଦ,
କୃଷ୍ଣ ଗାନୁଁ ଶତ ଶତ ଗୁଣେ ।

ଶୁଷ୍କ ତରୁ ପଲ୍ଲବଲ୍ଲ, ପାଷାଣ ତରଲ ଗଲ୍ଲ,
ଭୃଙ୍ଗ ପିକ ମୂକ ହେଲେ ବନେ ଗୋ ।
ସଙ୍ଗିନ ! ଭୃଙ୍ଗ ପିକ ମୂକ ହେଲେ ବନେ । ୧ ।
କମ୍ପମାନ ଗୃହଅଂଶୁ, ମୃଗ ମୃଗୀବନ ପଶୁ,
ଦେଖ ଗୋ ନିକଟେ ଅସିଲେଣି ।
ଯମୁନା ଉଜାଣି ବହେ, ସକଳେ ଅଞ୍ଜନ ମୋହେ,
ମଦନେ ଅସ୍ଥିର ଏବେ ଶୁଣି ଗୋ, ସଙ୍ଗିନ ।୨।
ଦେଖ ଶ୍ୟାମ ମର୍ମେ ପଶି, ଧଇର୍ଯ୍ୟ ଦେଲାଣି ଧ୍ୱଂସି,
ଅଚେତନ ହୋଇ ପଡ଼ିଛନ୍ତି ।
ହାହା ରାଧେ ପ୍ରାଣ ରାଧେ, ଡାକଣ ସାହିକ ବାଧେ,
କେତେ କଲବଲଛି ହୁଅନ୍ତି ଗୋ ସଙ୍ଗିନ । ୩ ।
[ ୮ ଶ୍ରୀଚନ୍ଦନ ]

ଶ୍ରୀରାଧା—ଅହା, ପ୍ରାଣବନ୍ଧୁ ମୋର ଚେତା ହଜାଇ ଦେଲେ ?
( ଏହା କହି ବସ୍ତ୍ରୟ ମନେ ବଂଶୀସ୍ୱନ ବନ୍ଦ କରିବା )

ସଖିଗଣ—(ମୋହ ହୋଇ ପଡ଼ିବା )

ଶ୍ରୀରାଧା—( ତଟସ୍ଥ ହୋଇ ) ଅହା ସଖିମାନେ ମଧ୍ୟ ଚେତାଶୂନ୍ୟ ହୋଇ ପଡ଼ିଲେଣି ଏବେ ମୁଁ କି ଉପାୟ କରିବି ?
( ଏହାକହି ଶ୍ରୀକୃଷ୍ଣଙ୍କ ମୁଖରେ ଚୁମ୍ବଦେଇ )
ପ୍ରାଣଧନ ସଚେତ ହୁଅ ।

ଶ୍ରୀକୃଷ୍ଣ—( ସଚେତ ହୋଇ ଉଠି ବସି ) ( ରାଧାଙ୍କ ପ୍ରତି )
ପ୍ରିୟେ ! ଇଏ କଣ ? ସଖିମାନେ ଅଚେତା ହୋଇ ଯାଇଛନ୍ତି ଯେ ?

ଶ୍ରୀରାଧା—ପ୍ରାଣେଶ୍ୱର ! ଆପଣ ଆଲିଙ୍ଗନ କରି ଜଣ ଜଣ କରି ଚେତନା କରାନ୍ତୁ ।

ଶ୍ରୀକୃଷ୍ଣ—ପ୍ରିୟେ ଚନ୍ଦ୍ରାବଳ ! ଉଠ (ଆଲିଙ୍ଗନ)

ଚନ୍ଦ୍ରାବଳୀ—( ଉଠିବସିବା । )

ଶ୍ରୀକୃଷ୍ଣ—ସଖି ଲଳିତେ ! ଉଠ ( ଆଲିଙ୍ଗନ କରିବା )

ଲଳିତା—ଉଠି ବସିବା ।

ଶ୍ରୀକୃଷ୍ଣ—ସଖି ବିଶାଖେ ! ଉଠ ( ଆଲିଙ୍ଗନ କରିବା । )

ବିଶାଖା—ଉଠି ବସିବା ।

( ଏହିପରି ସମସ୍ତ ସଖିଗଣ ଉଠି ବସିବା ଅଭିନୟ )

ଶ୍ରୀକୃଷ୍ଣ—( ରାଧାଙ୍କପ୍ରତି ) ପ୍ରିୟେ ! ତମ ଭାଗ୍ୟ ଧନ୍ୟ, ଆଜ ସମସ୍ତଙ୍କୁ
ବଂଶୀସ୍ୱନରେ ମୋହିତ କରି ଦେଲି ।

ଶ୍ରୀରାଧା—ନାଥ ! ଆପଣଙ୍କ କୃପାରୁ ସିନା ?

ଶ୍ରୀକୃଷ୍ଣ—ନା ପ୍ରିୟେ ! ଏହା ତୁମରି ମାହାତ୍ମ୍ୟ ଛଡା ଅନ୍ୟ କିଛି ନୁହେଁ,
ଏବେ ଆସ ତୁମେ ଏ ବୃନ୍ଦାବନରେ ରାଜାହେବ ।
ମୋର ସତ୍ୟ ରକ୍ଷା ହେଉ ( ବୃନ୍ଦାଙ୍କପ୍ରତି) ବୃନ୍ଦେ !
ରାଜ୍ୟାଭିଷେକ ଉପଚାର ସବୁ ଆୟୋଜନ କର ।

ବୃନ୍ଦା—(ସମସ୍ତ ଆୟୋଜନ କରିବା ଅଭିନୟ )

ଗୀତ ।

( ମାଧୁରୀରେ ମାଧୁରୀ-ବୃତ୍ତେ )

ଆସ ଆସ ପ୍ରିୟସହି, ଆସ ଗୋ ବହିନ ।
କୌତୁହଳ ହେବେ ଆଜ ନାଗର ମୋହନ । ଘୋଷା ।
ବୃନ୍ଦାବନେ ରାଜା ହେବେ ଆମ୍ଭ ବିନୋଦନୀ ।
ସେବାରେ ନିଯୁକ୍ତ ହୁଅ ସକଳ ସଜନୀ । ୧ ।
ଅଣ ଗୋ ବାଣ ଅଢ଼େଣୀ ବାନା ବଇରଖ ।
ସୁନାକର ଦଣ୍ଡଛତ୍ର ସଜାଡ଼ିଣ ରଖ । ୨ ।
ବାରତୁରୀ ଭେରୀ ବାର କାହାଳୀ ଗୋ ଅଣ ।
ଚାମର ଅଳଟ ଖପା ପଙ୍ଖା ସହିତେଣ । ୩ ।
ନବରତ୍ନ ସିଂହାସନ ସାଜ ଅଗୋ ଆଳି !
ଶୁଭ ମଙ୍ଗଳ ସଙ୍ଗୀତେ ଦିଅ ହୁଳହୁଳି । ୪ ।

( ବ୍ରଜବାସୀ )

( ସଖିମାନେ ଗୀତ ଗାଇବା ସଙ୍ଗେ ସଙ୍ଗେ ରାଜ ଉପସ୍ଥିର
ନିଯୋଗିବା ଅଭିନୟ )

ଲଳିତା—ସଖି ! ଆମ ରାଧିକା ତ ରାଜା ହେବେ ଆଉ କୃଷ୍ଣ ତ କଟୁଆଳ ହେବେ, ପୁଣି ପାତ୍ର ମନ୍ତ୍ରୀ ତ ଲୋଡ଼ା ।

ବୃନ୍ଦା—ଲଳିତେ ! ଚନ୍ଦ୍ରାବଳୀ ମନ୍ତ୍ରୀ ପଦରେ ନିଯୁକ୍ତ ହୁଅନ୍ତୁ ଆଉ ତେମେ ପାତ୍ର ହୋଇ ଏ ବୃନ୍ଦାବନ ରାଜ୍ୟର ହାନି ଲାଭ ସବୁ ବୁଝିବାରେ ତତ୍ପର ହୁଅ ।

ଚନ୍ଦ୍ରାବଳୀ—ବୃନ୍ଦେ ! ତେମେ ଛାମୁକରଣ ପଦଟିକି ନିଅ ।

ବୃନ୍ଦା—ପ୍ରିୟସଖିମାନଙ୍କର ଯେ ଇଚ୍ଛା ।

ଲଳିତା—ସଖି ! ବିଶାଖା କିରାନୀ ହୁଅନ୍ତୁ ।

ଚନ୍ଦ୍ରାବଳୀ-ହଁ ଗୋ ବିଶାଖାଙ୍କୁ ସେଇ ଉପାଧିଟି ସାଜିବ ।

ବିଶାଖା—ସଖି ଚନ୍ଦ୍ରାବଳି ! ତମ ପଦ୍ମା ତ ବଡ଼ ଚତୁରୀ, ତାଙ୍କୁ କେଉଁ ଉପାଧି ଦେଉଛ ?

ଚନ୍ଦ୍ରାବଳୀ-ବିଶାଖେ ! ପଦ୍ମା ସୈବ୍ୟା ଦୁହେଁ ତମ ସଙ୍ଗରେ ମୋହରିରଗିରି କରିବେ ।

ବୃନ୍ଦା—ଲଳିତେ, ଯେଉଁ ସଖି ଯେଉଁ କାର୍ଯ୍ୟରେ ନିଯୁକ୍ତ ହେବେ ଆସ ତାହାର ଗୋଟିଏ ତାଲିକା କରିବା, ସେହି ପ୍ରଣାଳୀ ଅନୁସାରେ ଏ ବୃନ୍ଦାବନ ରାଜ୍ୟର ଭଲ ମନ୍ଦ ବୁଝିବାକୁ ସୁବିଧା ମିଳିବ ।

ଲଳିତା—ବୃନ୍ଦେ ! ଆମ ରାଧା ଗୋଟିଏ ତାଲିକା ପ୍ରସ୍ତୁତ କରି ମୋ ଜିମା ଦେଇଛନ୍ତି ।

ବୃନ୍ଦା—ଲଳିତେ ! କଅଣ ଲେଖିଛନ୍ତି ପଢ଼ ।

ଲଳିତା—ସଖି ବିଶାଖେ ! ଏହି ତାଲିକାଟି ଧରି ମୋ ସଙ୍ଗରେ ଉଚ୍ଚସ୍ୱରେ ପଢ଼ିବଟି ?

ବିଶାଖା—ହଉ ସଖି !

( ତାଲକାସ୍ଥିତ ପଦ୍ୟ )

ମନ୍ତ୍ରୀ ପଦ ନେବେ ପ୍ରିୟସଖି ଚନ୍ଦ୍ରାବଳୀ ।
ପାଣ୍ଡ ଉପାଧି ପାଇବେ ଲଳିତା ସୁନ୍ଦରୀ । ୧ ।
ବନେଶ୍ୱରୀ ବୃନ୍ଦା ହେବେ ଶ୍ରୀଅମ୍ଭ କରଣ ।
ବିଶାଖା କରଣ ପଦେ ହୋଇବେ ଭୂଷଣ । ୨ ।
ସୈବ୍ୟା ପଦ୍ମା କରିବେ ଗୋ ମୋହରିରଗିରି ।
ନାଜର ପଦେ ରହିବେ ଶଙ୍ଖା ସହଚରୀ । ୩ ।
ପେସ୍କାର ହେବେ ଚମ୍ପକ ଲତିକା ଚତୁରୀ ।
ତୁଙ୍ଗବିଦ୍ୟା ହୋଇବେ ଭଣ୍ଡାର ଅଧିକାରୀ । ୪ ।
ଦାରୋଗା ହୋଇବେ ଇନ୍ଦୁରେଖା ଇନ୍ଦୁମୁଖୀ ।
ମୁନସି ପଦେ ରହିବେ ସୁଦେବୀକା ସଖୀ । ୫ ।
ରଙ୍ଗଦେବୀ ବୃନ୍ଦାବନେ ହେବେ ଜମାଦାର ।
ଭଦ୍ରା ଶ୍ୟାମଳା ଅର୍ଦ୍ଦୋଳୀ ସିପାହି ନଫର । ୬ ।
ଅନଙ୍ଗ ମଞ୍ଜରୀ ଆଦି ଯେତେକ ମଞ୍ଜରୀ ।
କରିବେ ଏମାନେ ରାଜ ହୁକୁମକୁ ଜାରି । ୭ ।
ଇତି । ଶ୍ରୀମତୀ ବୃଷଭାନୁ ରାଜକେମାଙ୍କ ସ୍ୱାକ୍ଷର ।

ଚନ୍ଦ୍ରାବଳୀ—ଲଳିତେ ! ଆମ ରାଧାରାଣୀ ତ ଭଲ କଥାଟିଏ ଭୁଲି ଯାଇଛନ୍ତି ? ସମସ୍ତଙ୍କ ଗୃକେର ଲେଖିଲେ, ଆଉ କହ୍ନୁଆଲଙ୍କ କର୍ତ୍ତବ୍ୟ କର୍ମତ ଲେଖିଲେ ନାହିଁ ? ତାଙ୍କ ହୁକୁମ ନାମାଟି ଫେରେଇ ଦିଅ ।

ଲଳିତା—( ଶ୍ରୀରାଧାଙ୍କୁ ଚାହିଁ ) ପ୍ରେମମୟି ! କହ୍ନୁଆଲଙ୍କ ପ୍ରତି ଯାହାକ କର୍ତ୍ତବ୍ୟ ତା ଆମେମାନେ କଥାଏ ଦିକଥା କହିବୁଁ, ଏହା ମଞ୍ଜୁର ହେଉ ।

ଶ୍ରୀରାଧା—ଲଳିତେ ! କଣ କହିବାର ଅଛି ତା' ପ୍ରକାଶକର ।

ଲଳିତା—ତେବେ ଶୁଣ ।

( ଗୀତ )

କହୁଅଲ ହୋଇ ଶ୍ୟାମ ଶ୍ରୀ ଛାମୁରେ ଥିବେ ।
ଜୟ ରାଧେ ରାଧେ ବୋଲି ପହରା ସେ ଦେବେ ॥
ଅଷ୍ଟ ପରମାଣେ କରଯୋଡ଼ି ରହିଥିବେ ।
ହାକର ହାକର ବୋଲି ମୁଖେ କହୁଥିବେ ॥
ଅଗେ ମୋହନଙ୍କଠାରୁ ଦସ୍ତଖତ୍ ନେବା ।
କହୁଅଲ ପଣ ଶାଢୀ ଶିରେ ବାନ୍ଧଦେବା ॥

( ବ୍ରଜବାସୀ )

ଶ୍ରୀରାଧା—ସଖି ! ତମମାନଙ୍କ ମନକୁ ଯେପର ସୁନ୍ଦର ଦଶୁଛି ସେପର କର ।

ଶ୍ରୀକୃଷ୍ଣ—ସଖି ! ମୋର ଗୋଟିଏ ନିବେଦନ ଅଛି ।

ଲଲିତା - ନାଗର ! କଅଣ କହୁଚ କହ ।

ଶ୍ରୀକୃଷ୍ଣ—ତେବେ ଶୁଣ । ( ଗୀତ )

ମୋର ଏକ ନିବେଦନ ଶୁଣ ସଖିଗଣ ।
ରାଇରାଜାଙ୍କର ଉପଚାରମାନ ଅଣ ॥
ସୁକନକ ଦଣ୍ଡ ଛତ୍ର ଅଢ଼େଣୀ ତରାଣ ।
ଖଦି ଚାମର ଅଲଟ ପଙ୍ଖା କୃଷ୍ଣାବାସ ॥
ଛଡ଼ବାଡ଼ି ରତ୍ନହାର ଚନ୍ଦନ କର୍ପୂର ।
ରାଇରାଜାଙ୍କ ରତନ ପାଗ ପୁଷ୍ପହାର ॥
ବଜାଅ ଗୋ ବଜଘୋଷ ମହୁରୀ ମର୍ଦ୍ଦଲ ।
ବୀଣା ରବାବ ସୀତାର ଯେ କଂସାଳ ଝାଞ୍ଜାଲ ।
ଶଙ୍ଖ ଭେରୀ ତୁରୀ ଶିଙ୍ଗା ବଜାଅ ମହୁରୀ ।
ବଜାଅ ବୀର କାହାଳୀ ସୁଯତନ କରି ॥
ପୁଷ୍ପହାର ଚୂତପତ୍ର ତୋରଣା ବାନ୍ଧନେ ।
ପୂର୍ଣ୍ଣକୁମ୍ଭ ରମ୍ଭାବୃକ୍ଷ ସ୍ଥାପ ସୁବଧାନେ ॥

ରତ୍ନସିଂହାସନେ ବିଜେ କରନ୍ତୁ କିଶୋରୀ ।
ଦିଅ ମୋତେ କଟୁଆଳ ପଣ ନଉକରୀ ॥
ଏହି ନିବେଦନ ମୋର ଅଗୋ ସଖିଗଣ ।
ଯାହା ଆଜ୍ଞା ହେବ ତାହା କରିବି ପାଳନ ॥

( ବ୍ରଜବାସୀ )

ବୃନ୍ଦା —( ସଖିମାନଙ୍କ ପ୍ରତି ) ସଖି ! ଶ୍ରୀକୃଷ୍ଣଙ୍କରତ ଏଥିପ୍ରତି ଅସମ୍ମତ ନାହିଁ ? ତାଙ୍କୁ କଟୁଆଳ ବେଶଟି ସଜାଇ ଦିଅ ।

ଲଳିତା – ବୃନ୍ଦେ ! ତେମେ ଶ୍ରୀକୃଷ୍ଣଙ୍କୁ କଟୁଆଳ ବେଶ ସଜାଅ କି, ଆମେମାନେ ଶ୍ରୀରାଧାଙ୍କୁ ରାଜ ବେଶରେ ମଣ୍ଡନ କରୁଚୁଁ । ( ସଖିଙ୍କ ପ୍ରତି ) ଆସ ଆସ ଗୋ ରାଇରାଜା ବେଶରେ ନିଯୁକ୍ତ ହେବା ଆସ ।

ସମସ୍ତେ—( ଶ୍ରୀରାଧାଙ୍କୁ ରାଜବେଶ କରିବା ଅଭିନୟ )

ବୃନ୍ଦା—( ଶ୍ରୀକୃଷ୍ଣଙ୍କୁ କଟୁଆଳ ବେଶ କରିବା ଅଭିନୟ )

ବିଶାଖା—( ବେଶ ଶେଷରେ ) ସଖି ! ବେଶତ ଶେଷ ହେଲା, ଏଥର ଆମ ରାଇରାଜା ସିଂହାସନରେ ବସନ୍ତୁ ।

ଲଳିତା—ହିଁ ଗୋ ! ଆସ ପହଣ୍ଡ ମଣାଇ ସିଂହାସନକୁ ନେବା । ( ଶ୍ରୀରାଧାଙ୍କ ପ୍ରତି ) ବୃନ୍ଦାବନେଶ୍ୱରି ! ଏ ରତ୍ନସିଂହାସନରେ ବିଜେ କର ।

( ଗୀତ )

(ଏ) ନବରତ୍ନ ସିଂହାସନେ ବସ ଗୋ କିଶୋରି ।
ଆସ ଆସ ପ୍ରାଣଧନ ବୃନ୍ଦାବନେଶ୍ୱରି ।
ଆସ ଆସ ଗୋ ବଦନା ! ମୋହନ ମନମୋହିନୀ ନାଗରୀ ରତନା ॥

ସମସ୍ତ ସଖିଗଣ – ଧର ଗୋ ଲଳିତେ ଏ କନକ ଦଣ୍ଡଛତ୍ର ।
ଢାଳ ଗୋ ଶ୍ୱେତଚାମର ବିଶାଖେ ତୁରିତ ॥
ଅଗୋ ଚିତ୍ରା ସହଚରି ! ବଜାଅ ବୀର କାହାଳୀ ଧୀର ଧୀର କରି ॥
ମୁକୁତା ଝାଲର ପଙ୍ଖା ଧରେ ରଙ୍ଗଦେବି !
ଚନ୍ଦ୍ର ସୂର୍ଯ୍ୟ ବାଣଧର ସଙ୍ଗିନ ସୁଦେବି !

ଅଗୋ ଚମ୍ପକ ଲଲନା । ଉଡ଼ାଅ ଗୋ ହରଷରେ ଏକନଶି ବାନା ॥
ଶଶୀରେଖା କେଖାପୁଚ୍ଛ କର ଗୋ ଚାଳନ ।
ତୁଙ୍ଗବିଦ୍ୟା ଛତ୍ର ଦଣ୍ଡ କର ଗୋ ଧାରଣ ।
ସବେ ଝଟ ଗୋ ଗହଣେ ! ମନ୍ତ୍ରୀପଣେ ଚନ୍ଦ୍ରାବଳୀ ବସ ସନ୍ନିଧାନେ ॥
ଅଗୋ ବୃନ୍ଦା ସତ୍ଵରେ ବିଳମ୍ବ ନ କର ।
କୋଟୁଆଳଙ୍କୁ ସମ୍ମୁଖରେ କରାଅ ହାଜର ।
ରାଇରାଜାଙ୍କ ହୁକୁମ । ପାଳନ କରନ୍ତୁ କୋଟୁଆଳ ଘନଶ୍ୟାମ ॥
( ବ୍ରଜବାସୀ )

( ଗୀତ ଗାଇ ଗାଇ ସଖିମାନେ ଶ୍ରୀରାଧାଙ୍କୁ—ନବରତ୍ନ ସିଂହାସନରେ ବସାଇବା ଓ ଚନ୍ଦ୍ରାବଳୀ ମନ୍ତ୍ରୀ ହୋଇ ରାଇରାଜାଙ୍କ ବାମ ପାଶରେ ବସିବା ଏବଂ ସଖି ସମୂହ ନିଜ ନିଜ ସେବାରେ ରହିବାର ଅଭିନୟ ) .

ଲଳିତା—( ବୃନ୍ଦାଙ୍କ ପ୍ରତି ) ବୃନ୍ଦେ ! କୋଟୁଆଳଙ୍କୁ ଶୀଘ୍ର ସିଂହାସନ ତଳେ ହାଜର କରାଅ ।

ବୃନ୍ଦା--( ଶ୍ରୀକୃଷ୍ଣଙ୍କ ପ୍ରତି ) ବୃନ୍ଦାବନ କୋଟୁଆଳ ! ଚାଲ ରାଇରାଜାଙ୍କ ହୁକୁମ ପାଳିବ ଚାଲ ( ଏହା କହି ନେବା )

ଲଳିତା—(ସିଂହାସନ ତଳେ କୋଟୁଆଳଙ୍କୁ ଦେଖି ରାଇରାଜାଙ୍କ ପ୍ରତି) ବୃନ୍ଦାବନେଶ୍ୱରି ! କୋଟୁଆଳଙ୍କ ପ୍ରତି କି ଆଦେଶ ହେଉଛି ତାହା ଶୀଘ୍ର କର ।

ଶ୍ରୀରାଧା—( ଚନ୍ଦ୍ରାବଳୀଙ୍କ କାନମୂଳେ ତୁନି କରି କହିବା ଅଭିନୟ )

ଚନ୍ଦ୍ରାବଳୀ---( ବୃନ୍ଦାଙ୍କ ପ୍ରତି ) ବୃନ୍ଦେ ! ରାଇରାଜାଙ୍କର ହୁକୁମ ହେଉଛି, ଶ୍ୟାମ କୋଟୁଆଳଙ୍କ ମସ୍ତକରେ କୋଟୁଆଳଗିରି ଶାଢ଼ୀ ବାନ୍ଧି ଦିଅ ।

ଲଳିତା—( ବୃନ୍ଦାଙ୍କ ହାତକୁ ଶାଢ଼ୀ ବଢ଼ାଇ ଦେବା ଓ ବୃନ୍ଦା ନିଜ ହସ୍ତରେ ଶ୍ରୀକୃଷ୍ଣଙ୍କ ମସ୍ତକରେ ବାନ୍ଧିବା ଅଭିନୟ )

ଶ୍ରୀରାଧା—(ପୁଣି ଚନ୍ଦ୍ରାବଳୀଙ୍କ କାନମୂଳେ ତୁନି କରି କହି ଦେବାର)

ଚନ୍ଦ୍ରାବଳୀ—( ଶ୍ରୀକୃଷ୍ଣଙ୍କୁ ଚାହିଁ ) କହୁଅଛ ! ଏଥର ବୃନ୍ଦାବନଯାକ ବୁଲି ରାଇରାଜାଙ୍କର ଜୟ ଘୋଷଣା ଦିଅ ।

ଶ୍ରୀକୃଷ୍ଣ—(କରଯୋଡ଼ି) ବୃନ୍ଦାବନେଶ୍ୱରୀ ! ମୋର ନିବେଦନ ଶ୍ରବଣ କରନ୍ତୁ ।

ଗୀତ ।

ଅଗୋ ବୃନ୍ଦାବନେଶ୍ୱରୀ ! ନାଗରୀ ରତନ ।
କର୍ଣ୍ଣେତେ ଶ୍ରବଣ କର ଏ ମୋ ନିବେଦନ ଗୋ ।
ଯଦି କହୁଅଛ ବୋଲି ମୁହିଁ ବୃନ୍ଦାବନେ ।
ଘୋଷଣା କରେ କି କେହି ବିନା ବଇଁଶୀନେ ଗୋ ॥
ବଇଁଶୀ ଦିଅ ମୋତେ ମୋହନ ବାଂଶରୀ ।
ବୁଲିବି ଏ ବନେ ରାଧେ ଜୟ ବୋଲି କରି ଗୋ ॥
ବଂଶୀସ୍ୱନେ ରାଇରାଜାଙ୍କର ଜୟଧ୍ୱନି ।
ଉଚ୍ଚାରିଲେ ସୁନ୍ଦର ଶୁଭିବ ସିନା ପୁଣି ଗୋ ॥
ଦାନକର ମୋତେ ଧନି ! ବଂଶୀ ବରତନ ।
ଶ୍ରୀଅମୁରେ ମୋର ମାତ୍ର ଏହି ନିବେଦନ ଗୋ ।

( ବ୍ରଜବାସୀ )

ଶ୍ରୀରାଧା—( ଲଳିତାଙ୍କୁ ) ଲଳିତେ ! ଏ ମୋହନ ବଂଶୀଟି କହୁଅଛଙ୍କୁ କୀର୍ତ୍ତନ ସ୍ୱରୂପ ଦିଅ । ( ଏହା କହି ବଂଶୀ ବଢ଼ାଇ ଦେବା )

ଲଳିତା—( ବଂଶୀଦାନ ପୂର୍ବକ ) କହୁଅଛ ! ନିଅ, ଏ ମୋହନ-ବଂଶୀସ୍ୱନରେ ରାଇରାଜାଙ୍କର ଜୟ ଘୋଷଣା ଦିଅ ।

( ଏହା କହି ବଂଶୀ ଦାନ କରିବାର )

ଶ୍ରୀକୃଷ୍ଣ—( ବଂଶୀ ପାଇ ମନ୍ଦହାସ ପୂର୍ବକ ) ଜୟ ରାଧେ !
ଜୟ ରାଧେ ! ! ଜୟ ରାଧେ ! ! !

ଗୀତ—କୀର୍ତ୍ତନ ସ୍ୱର ।

ଜୟ ରାଧେ ! ରାଧେ ରାଧେ ବୃନ୍ଦାବନେଶ୍ୱରୀ ।
ଜୟ ରାଧେ ! ରାଧେ ରାଧେ ନବୀନକିଶୋରୀ । ୧ ।

ଜୟ ରାଧେ ! ରାଧେ ରାଧେ ଭାନୁରକୁମାରୀ ।
ଜୟ ରାଧେ ! ରାଧେ ରାଧେ ତପ୍ତହେମଗୌରୀ । ୨ ।
ଜୟ ରାଧାରାଣୀ ! ଜୟ କୃଷ୍ଣବହ୍ଲାରଣୀ । ୦ ।
( ବ୍ରଜବାସୀ )

ଲଳିତା—( ଶ୍ରୀକୃଷ୍ଣଙ୍କପ୍ରତି ) କହୁଥିଲ ! ତେମେ ବଂଶୀ ବଜାଅ ଅମ୍ଭେମାନେ ଜୟ ଦେବୁଁ ।

ଲଳିତା—(ସଖିମାନଙ୍କ ପ୍ରତି) ସଖି ! ସମସ୍ତେ ମିଳି ରାଧାରାଣୀଙ୍କ ଜୟ ଦିଅ ।

ସଖିଗଣ—( ଏକସ୍ୱରେ )

ଗୀତ

ଜୟ ଜୟ ରାଧାରାଣୀ କୃଷ୍ଣବହ୍ଲାରଣୀ ।
ବୃନ୍ଦାବନେଶ୍ୱରୀ ନଳନାଳନଧାରିଣୀ ।
ଜୟ ବୃଷଭାନୁସୁତା କାମକଳ୍ପଲତା ।
ରାଧିକେ, ପ୍ରେମମୟୀ ସୁଲକ୍ଷଣ ଯୁକ୍ତା ॥
ଜୟ ରାଧାରାଣୀ ! କୃଷ୍ଣଅଭିସାରିଣୀ ।
କୃଷ୍ଣବହ୍ଲାରଣୀ ( ଜୟ ରାଧାରାଣୀ ! )
ନୀଳପଦ୍ମଧାରିଣୀ ! ( ଜୟ ରାଧାରାଣୀ ! )
ଦୁଃଖ ତାପ ହାରିଣୀ ! ( ଜୟ ରାଧାରାଣୀ ! )

ନାଃ—

(ବ୍ରଜବାସୀ )

( ସଖିଗଣ ସମସ୍ୱରରେ ଗାନ କରୁଥିବା ଓ ଉଦଣ୍ଡ ନୃତ୍ୟ-ସମୟେ ଧୀରେ ଧୀରେ ପରଦା ପତନ )

✤ ଯ ବ ନି କା ✤

---

( ଇତି ଶ୍ରୀ ରାଇରାଜା ନାଟକ ସମ୍ପୂର୍ଣ୍ଣ )

---

କଟକ, ସତ୍ୟବାଦୀ ପ୍ରେସରେ ଶ୍ରୀ ରାଧାନାଥ ରଥଙ୍କଦ୍ୱାରା ମୁଦ୍ରିତ ।

# ନିବେଦନ।



ଏତଦ୍ଦ୍ୱାରା ଭକ୍ତବୃନ୍ଦଙ୍କୁ ଜଣାଉଅଛୁଁ କି—ବ୍ରଜବାସୀ ବାବାଜୀ ଶ୍ରୀ ବୈଷ୍ଣବଚରଣ ଦାସଙ୍କ ରଚିତ ନିମ୍ନଲିଖିତ ବ୍ରଜଲୀଳା ନାଟକଗୁଡ଼ିକ ଅଭିନୟ ତ ଦୂରର କଥା ; ପାଠ କଲାମାତ୍ରେ ଯୁଗଳ ପ୍ରେମରେ ମନ-ମଧୁକର ମୁଗ୍ଧ ହୋଇ ଯାଏ।

ଅଦ୍ଭୁତ, କରୁଣ, ବୀର, ରୌଦ୍ର, ଶାନ୍ତ ପ୍ରଭୃତି ନବରସର ବିକାଶରେ ହୃଦୟ ବିଗଳିତ ହୋଇଯାଏ, ଏପରି ଭକ୍ତି ରସର ବିପୁଳ ପ୍ଲାବନରେ ଭକ୍ତମାନଙ୍କ ହୃଦୟରେ ଭକ୍ତିକୁସୁମ ପ୍ରସ୍ଫୁଟିତ ହୋଇପଡ଼େ। ଯେଉଁମାନେ ମୋହନ ଗୋସ୍ୱାମୀଙ୍କ ରାସଦଳରେ ଏ ମହାଶୟଙ୍କ ନାଟକୀୟ ଛଟା ଦେଖି ଅଛନ୍ତି ସେମାନଙ୍କୁ କିଛି ଅବିଦିତ ନ ଥିବ, ବିଶେଷ ଲେଖିବା ବୃଥା, ପୁସ୍ତକ ଦେଖିଲେ ଜାଣି ପାରିବେ। ଇତି।

ନାଟକର ତାଲିକା

| | | | |
|---|---|---|---|
| ୧ | ଶ୍ରୀକୃଷ୍ଣଙ୍କ ଜନ୍ମ ଓ ବାଲ୍ୟଲୀଳା | ୬ | ରାଇରାଜା |
| ୨ | ବସନ୍ତ ଉତ୍ସବ | ୭ | କୃଷ୍ଣଲୀଳା |
| ୩ | ବିରହ ମାନ | ୮ | ସୁବଳ ମିଳନ |
| ୪ | ଦୁର୍ଜ୍ଜୟମାନ | ୯ | କୁଞ୍ଜମିଳନ |
| ୫ | ମାନଭଞ୍ଜନ | ୧୦ | ଶରତରାସ |

ପ୍ରାପ୍ତିସ୍ଥାନ—

**ଶ୍ରୀ ଦାଶରଥି ଦାସ,**

ବାଲୁବଜାର, ପୋଃ ଅଃ ଚାନ୍ଦନୀଚୌକ, କଟକ।

Printed-R. N. Rath, The Satyabadi Press,
CUTTACK. 1929.